# କପଟ ପାଶା ।

ଶ୍ରୀମାଧୀବର ବିରଚିତ ।

ଇ ଦା ନୀଂ

ଶ୍ରୀ ଅଭିନ୍ନଚନ୍ଦ୍ର ଦାନଙ୍କ ଦ୍ୱାରା

ଚତୁର୍ଥବାର ପ୍ରକାଶିତ ।




କଟକ ଅରୁଣୋଦୟ ଯନ୍ତ୍ରାଳୟରେ

ପ୍ରିଣ୍ଟର-ଶ୍ରୀ ନିତ୍ୟାନନ୍ଦ ସାହୁଙ୍କ ଦ୍ୱାବ ମୁ ଦ୍ରତ ।

ପ୍ରାପ୍ତିସ୍ଥାନ—

ଅରୁଣୋଦୟ ପୁସ୍ତକାଳୟ ବାଲୁବଜାର

ପୋଃ ଚାନ୍ଦନୀଚୌକ କଟକ ୧୯୩୪

ମୂଲ୍ୟ ୦ ° /　　ଏକ ଅଣାମାତ୍ର ।


Digitized by PPRACHIN, SOA

# କପଟପାଶା ।

## ପ୍ରଥମ ଛାନ୍ଦ ।

ରାଗ ନଳିନୀଗୌଡ଼ା ।

ଜୟ ଜୟ ଦନ୍ତୀରାଜ ଗଉରୀନନ୍ଦନ । ପୃଥ୍ୱୀଜଠର ନାଥ ଇନ୍ଦୁର ବାହନ ହେ ।୧। ଗଜମୁଖ ଏକଦନ୍ତ କପାଳେ ସିନ୍ଦୂର । ଯୋଗେଶ୍ୱର ପ୍ରତ୍ୟକ୍ଷ ହୁକେ କରୁ ଗୋଚର ହେ ।୨। ଯଜ୍ଞବିଘ୍ନ ଅଗ୍ରେ ପ୍ରଥମେ ତୋର ପୂଜା । ଗଙ୍ଗାଧର ତାତ ତୋର ଜନନୀ ଗିରିଜା ହେ । କର ଅନୁଗ୍ରହ ମୋତେ ଅମ୍ବିକାନନ୍ଦନ । କହିବାକୁ ଇଚ୍ଛା ମୋର ଭାରତବିଧାନ ହେ ।୪। କୁରୁପତି ଯୁଧିଷ୍ଠିର ପଶାଖେଳରସ । କହିବାକୁ ଇଚ୍ଛା ଛନ୍ଦପ୍ରବନ୍ଧ ଭାଷ ହେ ।୫। ବନ୍ଦଇଁ ଗୋ ସାରଦା ଏବ୍ରହ୍ମପୁରବାସୀ । ତୋର ଅନୁଗ୍ରହ ହେଲେ ମୂର୍ଖ ପଣ୍ଡିତରେ ମିଶି ଗୋ । ତୋ ଚରଣେ ବନ୍ଦୁ ମା ଗୋ ସର୍ବଦା ଭକତ । ଜ୍ଞାନଧୀବରଙ୍କୁ ଦିଅ ଏହୁ ପଦଗତ ଗୋ ।୬। —୦—

## ଦ୍ୱିତୀୟ ଛାନ୍ଦ ।

ରାଗ ବଙ୍ଗଳାଶ୍ରୀ ।

ଏଥୁ ଅନନ୍ତରେ ଦିଲ୍ଲୀ ଦେଶରେ ବୈବସ୍ୱତମନୁ ରାଜା । ଅଗସ୍ତି ଚରଣ ଧରି ନୃପବର କଲେ ଧୂପ ଦୀପ ପୂଜା ।୧। ଉତ୍ତମ ପଦାର୍ଥ ଦେଇ ନୃପନାଥ ଚରଣେ ହୋଇ ବିନମ୍ରୀ । କରପଦ ଯୋଡ଼ି ମୁନି-ପାଦେ ପଡ଼ି ମଧୁରବାଣୀ ଭାଷଇ ।୨। ତୁମ୍ଭେ ବ୍ରହ୍ମବେତ୍ତା କର୍ତ୍ତା ମୋକ୍ଷଦାତା ସକଳ ଶାସ୍ତ୍ରର ଜ୍ଞାତା । ଭାରତରହସ୍ୟ ପରମପବିତ୍ର କହି ଫିଟୁ ମନୋବ୍ୟଥା ।୩। ଯୁଧିଷ୍ଠିର ଦେବ ଦୁର୍ଯ୍ୟୋଧନସଙ୍ଗେ କପଟ

Digitized by PPRACHIN, SOA

ପାଶାରେ ହାର । ତଦନ୍ତେ ଛ କଳା ଗାନ୍ଧାରୀର ବଳା କହ ମୋତେ ବୃହସ୍ପତ୍ର । ୪ । ଅଗସ୍ତି ବୋଲନ୍ତି ଶୁଣ ନରପତି କହିବା ତହିଁ ଚରିତ । ରାଜ୍ୟ ଦଣ୍ଡ ସିଂହାସନ ସହିତରେ ହାରିଲେ ଧର୍ମଙ୍କ ସୁତ । ଭୀମ ଅର୍ଜୁନ ନକୁଳ ସହିତେ ସହଦେବ ନନ୍ଦିବର । ଦ୍ରୁପଦକୁମାରୀ ସହିତରେ ହାର ଅମୂଲ୍ୟ ରତ୍ନଭଣ୍ଡାର । ୬ । ଅଚଳଲକ୍ଷ୍ମୀହରେ ନୃପତି ସଭାରେ ତଳେ ଛନ୍ତି ପାଣ୍ଡବଭାଇ । ଭୀଷ୍ମ ଦ୍ରୋଣଗୁରୁ କର୍ଣ୍ଣସଙ୍ଗେ ମାନ-ନଗାବନ୍ଧୁ ବସିଅଛନ୍ତି । ୭ । ଶୀଘ୍ରକର ଦୁଃଶାସନ ମୁଖ ଗୃହିଁ ଆଜ୍ଞା ଦେଲା କୁରୁଷଣ । ବାରୁଣାବନ୍ତକୁ ଯାଇଁ ଦ୍ରୌପଦୀର କେଶ ଧର ବେଗେ ଆଣ । ୮ । ହୋଇ ଏକ ନାରୀ ପାଞ୍ଚଭର୍ତ୍ତା କର ବୋଲାଉଛି ମହାସତୀ । କେଡ଼େ ଶୋଭାବନ ଦେଖୁ ସର୍ବଜନ ଯେଣେ ଅଛି ମୋର କଥା । ୯ । ଦୁର୍ଯ୍ୟୋଧନବାଣୀ ଦୁଃଶାସନ ଶୁଣି ଧାଇଁଲା ଅତିପ୍ରଖରେ । ହେଲେ କ୍ଷଣ ସ୍ଥାନ ପ୍ରବେଶ ହୋଇଲା ବାରୁଣାବନ୍ତନଗରେ ।୧୦।



## ତୃତୀୟ ଛାନ୍ଦ ।

ରାଗ ଚୋଖି ।

ଶୁଣ ଅହେ ମୁନିବର ବାରୁଣାବନ୍ତନଗର ହସ୍ତିନାକୁ ଦ୍ୱାଦଶ-ଯୋଜନ ଅଟଇ । ପବନଙ୍କୁ ଖରତର ଧାଇଁଲା ସେ ଦୁଃଶାସାର ପ୍ରବେଶ-ହେଲା ବାରୁଣାବନ୍ତରେ ଯାଇଁ । ପାଦଘାତେ ମହୀ ଚମକେ । ଅରେ ଅରେ ପାଣ୍ଡବାରେ ବୋଲୁଣ ଡ଼ାକେ । ୧ । ଭୟ ପାଇ ନଗରଲୋକେ ପଳାଇଣ ଗଲେ ଥୋକେ ସିଂହଦ୍ୱାରେ ଦୁଃଶାସନ ପଡ଼ିଲା ଠେଲି । ଦ୍ୱାରେ ଦ୍ୱାରମାନେ ଥିଲେ କୁନ୍ତୀଙ୍କ ଆଗେ କହିଲେ ଦୁର୍ଯ୍ୟୋଧନ ଭ୍ରାତ ଦୁଃଶା ଅଛନ୍ତି ପେଲି । ଶୁଣି କୁନ୍ତିଭୋଜକୁମାରୀ । ଯାଇ ସିଂହଦ୍ୱାର ମାଡ଼ି ବହିଲେ ନାରୀ । ୨ । କୁନ୍ତୀ ବୋଇଲେ ରେ ବାବୁ ରହ ରହ କଥାସବୁ ପଚାରିବା କପାଁ ତୁମ୍ଭ ଭିତରେ ପଶୁ । ସିଂହର ଭୁବନେ ଅସି ଶୃଗାଳ ପଶଇ ଥିସି କହ ଏ ଚରିତ ମନୁ ସଂଶୟ

Digitized by PPRACHIN, SOA

ନାଶୁ । ଦୁଃଶା କିବ ଯୋଡ଼ ଜଣାଏ । ନନ୍ଦକୁତେ କଲେ ମା ଗୋ ତୁମ୍ଭର ପୋଏ । ୩ । ଯୁଧିଷ୍ଠି ହସ୍ତିନା ଗଲେ ମାନଗୋବିନ୍ଦର ଭୁଲେ ପଶାଖେଳରସେ ମାତ ହୋଇଲେ ଭୋଳ । ରାଜ୍ୟ ଦଣ୍ଡ ସିଂହାସନ ନକୁଳ ଭୀମ ଅର୍ଜୁନ ଦ୍ରୌପଦୀ ସହତେ ପୀଡ଼ କଲେ ସକଳ । ହାରିଲେ ସେ ଧର୍ମଙ୍କ ସୁତ । ଜିଣିଲେ ମାନଗୋବିନ୍ଦ ଶୁଣ ଗୋ ମାତ ।୪। ଅଙ୍କମୋତେ ଛନ୍ନ ଦେଇ ରାଜା ଭାନୁମତୀପାଇଁ ଦ୍ରୌପଦୀର କେଶ ଧରି ଘେନ ମୁଁ ଯିବା । ଅଗୋ ମାତ ଛାଡ଼ ଦ୍ୱାର ଯିବଇଁ ଭିତରପୁର ଜଳୁଛି ହୋଇଲେ ପରାଭବ ପାଇବ । କୁନ୍ତୀଦେବୀ ପୁଛିଲେ ସବୁ । କେଉଁ ପୀଢ଼େ ଦ୍ରୌପଦୀଙ୍କ ହାରିଲେ ବାବୁ । ୫ । ଦୁଃଶାସନ ବୋଲେ ମାତଃ ପ୍ରଥମେ ଧର୍ମଙ୍କ ସୁତ ହାରିଲେ ସପତପୁର ଧନ ଭଣ୍ଡାର । ଦ୍ୱିତୀୟରେ ପୀଢ଼ି କରି ଦଣ୍ଡ ସିଂହାସନ ହାରି ତୃତୀୟେ ହାରିଲେ ତୁମ୍ଭ ଭୀମକୁମର । ଚତୁର୍ଥେ ହାରିଲେ ଅର୍ଜୁନ । ପଞ୍ଚମେ ହାରିଲେ ମା ଗୋ ମାଦ୍ରୀନନ୍ଦନ ॥ ଷଷ୍ଠବେଳେ ପୀଢ଼ କରି ହାରିଲେ ଦ୍ରୌପଦୀନାରୀ ସପ୍ତବେଳେ ହାରି ଅଙ୍ଗ ହେଲେ ମଉନ । କୁନ୍ତୀ ବୋଇଲେ ଦ୍ରୌପଦୀ ପ୍ରଥମବିବାହୀ ସତୀ ପ୍ରଥମପୀଢ଼େ ହାରିଲେ ନାହିଁ ପୁଣ । ଭାଇ ଭାଇ କରିଛ ଗୋଳ । ଏ ଛାର କଥାକୁ ଦୁଃଶା କରୁ କଥାଳ ।୬। ସେ ଦରେ ସୋଦରେ ପୁଣି ହେଉଅଛ ହଣାହଣି କହ ଦ୍ରୌପଦୀ କି ଦୋଷ କରିଛି ତହିଁ । ଶୁଣି କରି ଦୁଃଶାସନ ବୁଲାଇ ବେନିନୟନ ଅଡ଼ ହୁଅ ବୋଲି କୁନ୍ତୀଦେବୀଙ୍କି କହି । ପେଲି କରେ ଦେଲା ପକାଇ । ଜବାଟକଣରେ ଦେବୀ ପଡ଼ିଲେ ଯାଇଁ । ୮ । କୁନ୍ତୀ ଡାକ ଦେଲେ ହରି ଅହେ ଝଙ୍କରନ୍ଧାରୀ ଦ୍ୱାରକା ଛାଡ଼ି କି ନିଜଧାମକୁ ଗଲ । କେତେ କେତେ ସଙ୍କଟରୁ ରଖିଛ ମୋହ ପୁତ୍ରଙ୍କୁ ଏବେ ଯୁଧିଷ୍ଠିରଠାରୁ ଦୟା ଛାଡ଼ିଲ । ପଞ୍ଚପୁତ୍ର ମଲେ କି ମୋର । ଥିଲେ କପାଁ ଦୁଃଶାସନ ପଶନ୍ତା ଘର । ୯ । କୁନ୍ତୀ ଉକ୍ତି କଲେ ହରି ଦ୍ରୁପଦରାଜକୁମାରୀ ସୁଭଦ୍ରାକୁ ଘେନ ଯାଇଁ ଭିତରେ ପଶ ବଳାତ୍କାରେ ଦୁଃଶାସନ ପଶିଲା ଅନ୍ତଃଭବନ ସ୍ତୁପଟଭ୍ରବରେ ଭିଡ଼ ହୁଅ

Digitized by PPRACHIN, SOA

ଅଦୃଶ୍ୟ । ତାହା ଶୁଣି ସୁଭଦ୍ରାଦେଇ । ଚନ୍ଦ୍ର ଶାଳାପୁରେ ବେଗେ ଲୁଚିଲେ ଯାଇଁ । ୧୦ । ଦ୍ରୌପଦୀ ଭୟ ପାଇ ଅକୁଳେ ଅଙ୍ଗ ଥରଇ ଚରତର ହୋଇ ଉଠି ଗଲେ ପଳାଇ । କେଶ ପାଶ କଞ୍ଚୀବାସ ଫିଟି ବହେ ଖରଶ୍ୱାସ ବେଷାଉଶାଳମଧ୍ୟରେ ଲୁଚିଲେ ଯାଇଁ । ବ୍ୟାଧଭୟେ ଯେସନ୍ତେ ମୃଗୁଣୀ । ଚଞ୍ଚଳ ନୟନ, ମୁଖୁଁ ନ ଫୁଟେ ବାଣୀ ।୧୧। ପୁରେ ପୁରେ ଦୁଃଶାସନ ଖୋଜଇ ସର୍ବଭବନ ନେଉପୁର ବାସପୁର ସ୍ନାନ-ମ୍ନାପୁର । ଝୀନପୁର ଚହ୍ନପୁର କନକୂହମଣିପୁର ଇନ୍ଦ୍ର ଅବକାଶପୁର ଖୋଜଇ ବୀର । ଯୁଧିଷ୍ଠି ଶୁଅନ୍ତ ଯେପୁରେ । ଇନ୍ଦ୍ରପୁର ସମ ନୋହେ ତାକୁ ଲକ୍ଷ୍ୟରେ ।୧୨। ସୁବର୍ଣ୍ଣକୋଣ ପାର୍ଦ୍ଦ ପ୍ରତି ଅଛଇ ସେ ପୁର ସ୍ଥିତ ସ୍ଥାପି ନୀଳା ଝଞ୍ଜାଅଛି ଅଷ୍ଟରତନ । ହୀରକ ମୋତି କେତେ ଲମ୍ବିଛି ମୁକୁତାଙ୍କର ପ୍ରବାଳର ସ୍ତମ୍ଭ ହୋଇଅଛି ଶୋଭନ । ଦିବ୍ୟ ପାଞ୍ଚବର୍ଣ୍ଣ ଚନ୍ଦୁଆ । ମର୍କତସ୍ତମ୍ଭରମାନ ଲମ୍ବିଛି ନୂଆ ।୧୩। ସେପୁରରେ ଦୁଃଶାସନ ନ ପାଇ ଦ୍ରୌପଦୀଙ୍କ ଦୃଷ୍ଟ ହୋଇ ବଦନ ଲେଉଟି ଅସେ । ଖୋଜି ନ ପାଇଣ ଦେଖି ବେଷାଉଶାଳ ନିକଟ ଅଶ୍ୱ ରବ ଦେଲ ସୁହେଁ ଗୁରପାରଣେ । ପୂର୍ବଦେଶେ ଉଦେ କି ଭାନୁ । ସେହ୍ନମନ୍ତ ଦିଶୁଅଛି ଦ୍ରୌପଦୀତନୁ । ୧୪ । ଦେଖିଣ ଦୁଃଶା ଚକିତ ହୋଇଲା କି ଦିନନାଥ ଅକାଶକୁ ଛାଡ଼ି ଅଛି ଏଥି ରହିଲା । କି ଅବା ସନ୍ଧ୍ୟାର ଭୟେ ଶଶଧର ଏଥି ରହିଛି କେବଣ ଚରିତ ମୋତେ ଜଣା ନ ଗଲା । ପୁଣି ଗଲା ପହଞ୍ଚେ ଗୃହେ । ନିକଟେ ଜାଣିଲା ବୀର ଦ୍ରୌପଦୀ ବୋଲି ।୧୫। ଶୁଣ ହେ ସୁଜନଜନ ମୁଁ ଛାର ପାମର ସ୍ଥାନ କହିବାକୁ ଯୋଗ୍ୟ ନୁହଇ ମହାଭାରତ । ଅର୍ଥକୁ ଅର୍ଥ ମିଶାଇ ପଦକୁ ପଦ ପକାଇ ଛନ୍ଦପ୍ରବନ୍ଧରେ ମୁଁ କଲଇଁ ଗୀତ । ସାଧୁଜନେ ନ ଧେନ ଦୋଷ । କହେ ସ୍ଥାନ ସ୍ୱାମୀ କୃଷ୍ଣ ଚରଣେ ଆଶ । ୧୬ ।



Digitized by PPRACHIN, SOA

# ଚତୁର୍ଥ ଛାନ୍ଦ ।

ସ୍ୱର ରଣବନ୍ତେ, ହରଚନ୍ଦ୍ରଶା ବାଣୀ ।

କର୍ଣ୍ଣ ମନ ଦେଇ ଶୁଚିମନ୍ତ୍ର ହୋଇ ଶୁଣ ଜନେ କୃଷ୍ଣରସ । ଯେସନ୍ତେ କଳାକର ନାଶେ ଅନ୍ଧକାର ତେସନେ ଦୁଃଖ ବିନାଶ ହେ । ଶୁଣ । ଭଜ ନିରତେ ପଦ୍ମଚରଣ ହେ । ଫେଡ଼ନ୍ତୁ ଦ୍ରୌପଦୀର ଏ କଷଣ ହେ । କୃଷ୍ଣ ବିନା ନାହିଁ ପରିତ୍ରାଣ ହେ । ୧ । ବେଶାଇଶା-ଳରେ ଦୁଃଶାସନବୀର ଦ୍ରୌପଦୀ ଦେଖିଲା ଯାଇ । ତାହାଙ୍କର କେଶ ଧରିବ ଟବାଲଣ ହସ୍ତକୁ ଦେଲା ଚଢ଼ାଇ ସେ । ବୀର । ଦେଖି ଦ୍ରୌପଦୀ ଦେଲେ ଉତ୍ତର ରେ । ଦୁଃଶା ନ ଛୁଁଅ ଅଙ୍ଗ ମୋହର ରେ । ପାଞ୍ଚା-ସ୍ତ୍ରରଣ ମୋହ ଶରୀର ରେ । ଏହି ଛୁଇଁଲେ ଦୋଷ ଅପାର ରେ ।୨। ମୂର୍ଖ ଦୁଃଶାସନ ବୋଲଇ ବଚନ ନିର୍ଲଜ୍ଜୀ ହୋଇଲୁ କାଇଁ । ମିଛେ ରଜୋବନ୍ତୀ ବୋଲୁଣ ଯୁବତି ମୋତେ ଲେଡ଼ୁଛୁ ଭଣ୍ଡାଇ ଗୋ । କନ୍ଥ । କେଉଁ ଦୋଷ ଛୁଇଁଲେ ତୋ ଦେହ ଗୋ । ମୋତେ ଲାଗିଲା ବଡ଼ ସନ୍ଦେହ ଗୋ । ଅଜ ନାହିଁ ଯିବୁ ରହ ରହ ଗୋ । ୩ । ଦ୍ରୌପଦୀ ବୋଇଲେ ପ୍ରଥମ ଦିନରେ ରଜୋବନ୍ତୀ ଯେବେ ହୋଇ । ସେ ଦିନ ପୁରୁଷ ସ୍ତ୍ରୀଙ୍କ ଛୁଇଁଲେ ଲଙ୍ଘଭଙ୍ଗ ଦୋଷ ପାଇ ରେ । ବୀର । ଏବେ ଶୁଣ ଦ୍ୱିତୀୟ ଦିନର ରେ । ଅଙ୍ଗ ଛୁଇଁଲେ ବଜ୍ରପ୍ରହାର ରେ । ଗୋବ୍ରହ୍ମହତ୍ୟା ଦୋଷ ହୋଏ ତାଠ ରେ ।୪। ତୃତୀୟ ଦିନରେ ନାରୀକି ଛୁଇଁଲେ ବ୍ରହ୍ମହତ୍ୟା ଦୋଷ ପାଇ । ଚତୁର୍ଥଦିନରେ ବାଳ-ହତ୍ୟା ଦୋଷ ପଞ୍ଚମେ ମାତୃ ହରଇ ରେ । ବୀର । ଷଷ୍ଠଦିନରେ ଏହିପ୍ରକାର ରେ । ସପ୍ତଦିନରେ ଶୁଦ୍ଧ ଶରୀର ରେ । ଗନ୍ଧ ଅର୍ପିଲା ଯେଣ ସନ୍ଧ୍ୟର ରେ । ଦେହେ ଲେପି ଗୋମୟ ଅଗର ରେ । ସବୁ ସ୍ତ୍ରୀହରେ ଥାଉଁ ବାହାର ରେ । ୫ । ନଷ୍ଟଜଳେ ପଶି ସ୍ନାନ କରସାର କୃଦନ୍ତରେ ଭୁଲେ ଉଠେ । ଔଦାବାସ ପିନ୍ଧ ବେଶିବ ଦ ଦୂହିଁ ଘରକୁ

Digitized by PPRACHIN, SOA

ଅଛେ ଲେଉଟି ସେ । ନାସ୍ତି । ଶାଶୁ ଶ୍ୱଶୁରଙ୍କ ସେବାକର ସେ ।
ଗୁରୁବ୍ରାହ୍ମଣେ ପ୍ରଣାମ କର ସେ । ଗୃହ କୁଟୁମ୍ବେ ଯାଇଁ ଆଦର ସେ ।୬।
ଧବଙ୍କର ଶେଷେ ରଜନୀ ପ୍ରବେଶେ ସୁବେଶ କରଣ ଅଙ୍ଗ । ଶୟନ
ଶଯ୍ୟାରେ କାନ୍ତ ଅଙ୍ଗସଙ୍ଗ କରେ ରସକ୍ରୀଡ଼ା ରଙ୍ଗ ସେ । ଧନ ।
ରଜ ସାର୍ଯ୍ୟ ହୁଏ ଏକସ୍ଥାନ ସେ । ଜନ୍ମ ହୋଏ ଅପୂର୍ବ ନନ୍ଦନ ସେ ।
ଲକ୍ଷେ ହାଣି ପୋଷଣେ ଭୁଜନ ସେ ।୭। ଦୁଃଶାସନ କହେ ସ୍ତ୍ରି ସ୍ୱ
ମାଙ୍କ ଭୂତ ପୁଣ୍ୟକୁ ନାହିଁ ବିଶ୍ୱାସ । ଚମ୍ପାପ୍ରାପ୍ତ ବେଣୀ ନୟନଙ୍କୁ କର
ଧଇଲା ଦ୍ରୌପଦୀ କେଶ ସେ । କାଳ । ରାହୁ ଗ୍ରାସେ କି ଚନ୍ଦ୍ରମଣ୍ଡଳ ।
ସେ । ଖରେ ଘେନଗଲା ଅନ୍ତସଭ ସେ । ସତୀଚରଣ ନ ପଡ଼େ ତଳ
ସେ । ବୋଲେ ରଖ ରଖ ଅଚ୍ୟୁତ ସେ ।୮। ରକ୍ଷା କର ପ୍ରଭୁ ଜଗତ-
ଈଶ୍ୱର କରୁଣାସିନ୍ଧୁ ମୁରାରି । ତୁମ୍ଭେ ଧନଞ୍ଜୟ ନ ରଖିଲେ ମୋତେ
ଅନାଥା ହୋଇଲି ନାସ୍ତି ହେ । ହରି । ଦୁଃଶା ବଳେ ନେଉଅଛି ଧରି
କାହା ଆଗେ କରିବ ଗୁହାରି ହେ । ଏହି ସଙ୍କଟରୁ କର ପାର ।
ହେ ।୯। ପବନଙ୍କୁ ଖରେ ଦୁଃଶାସନ ସାର ହସ୍ତିନାପ୍ରବେଶେ ଯାଇ ।
ଦ୍ରୌପଦୀ ବୋଲନ୍ତି ସର୍ବଙ୍କୁ ନ ଜାଅ ପରମୁଣ୍ଡା ଚୋର ଯାଇ ରେ ।
ସାର । ଚୋଟେ ଶପଥ ଅଛି ମୋହର ରେ । କୃଷ୍ଣ ଦ୍ରୋଣ ଅଛନ୍ତି
ସଭ୍ରର ରେ । ଲଜ୍ଜା ହୋଇବ ମୋତେ ଅପାର ରେ ।୧୦। ସଙ୍କ
ନିକଟରେ ରଖି ଦୁଃଶାସନ ଦୁର୍ଯ୍ୟୋଧନ ପାଶେ ଗଲା । ଭେଟେଇ ନୃପତି
ଅଙ୍କରେ ଦ୍ରୌପଦୀ ଆଣିଲି ବୋଲି ବୋଇଲା ହେ କହ । ଏବେ
କ କରିବ ଆଜ୍ଞା ଦିଅ ହେ । ପାକାଶ୍ରବଶ ହୋଇଛି ଦେହ ହେ ।
ଦୁର୍ଯ୍ୟୋଧନ ହସେ ଠହ ଠହ ରେ ।୧୧। ଶୁଣି କୁରୁପତି ଶକୁନିଙ୍କ
ଗୁହିଁ ବୋଲନ୍ତି ହେ ମାମୁ ଶୁଣ । ପାକାଶ୍ରବଶତ ହୋଇଛି ଦ୍ରୌପଦୀ
ଆଣିବାର ଅକାରଣ ସେ । ନାସ୍ତି । ଅଙ୍ଗ ହୋଇଅଛି ରଜୋନାସ୍ତି
ସେ । ତାହା ଛୁଇଁଲେ ତୁଟଇ ଶିଷ ସେ । ଅର୍ଥ ମୂର୍ଖ ନ ବୁଝି
ତାହାରି ହେ ।୧୨। ଶକୁନି ବୋଲଇ ଶୁଣ ନୃପସାଇଁ ଏବେ

Digitized by PPRACHIN, SOA

ରାଜ୍ୟଙ୍କ ଯୁବତୀ । ଏକବସ୍ତ୍ରା ହୋଇ ପାଞ୍ଚାଳୀ ବସ୍ତ୍ର ବୋଲାଉଛ ମହା-ଙ୍ଗ ସେ । ମୁଁ ତ । ଅମ୍ଭଙ୍କୁ ଅଣ ଏହୁ ଘନ୍ତ ସେ । ପଶା ପିନ୍ଧିଲା ବସନ ଫେଡ ସେ । ଦୁଃଶା ଶୁଣିଗଲା ତଡ଼ବଡ଼ ସେ । ୧୩ । ଦ୍ରୁପଦ-ପଣ୍ଡିତଙ୍କର କେଶ ଧର ଦୁଃଶାସନ ଭିତରକୁ ନେଲା । ଦୁର୍ଯ୍ୟୋଧନ ବୋଲେ ପାଞ୍ଚାଳୀ ଆଜି ଜଣେ ତୋତେ ବ ରଖିଲା ଗୋ । ଚନ୍ଦ୍ର । ତୋତେ ରଖନ୍ତୁ ପାଞ୍ଚ ଗୋରସ୍ତ ଗୋ । ତୋର ପରମାନନ୍ଦ ଅଚ୍ୟୁତ ଗୋ । କପଟ ଦେଇଛୁ ଏତେ ଆରତ ଗୋ । ୧୪ । ଅନବରତରେ ପଞ୍ଚପାଣ୍ଡବଙ୍କୁ ରଖନ୍ତି ନନ୍ଦନନ୍ଦନଙ୍କ ଆଇ । କାହିଁ ଅଛ ତୋର ଦେବରଥଧର ଚିନ୍ତା ନ କରୁ କପଟ ଆଇ ତା । ଶୁଣି । ଦେବୀ ଦ୍ରୌପଦୀ ବୋଲନ୍ତି ବାଣୀ । ନିନ୍ଦା କରୁ କପଟ ଚକ୍ରପାଣି । କହୁଅଛ ପୁରାତନ ବାଣୀ । ଶ୍ରୀମାଧବର ଏ ରସେ ଭଣି । ୧୫ ।



## ପଞ୍ଚମ ଛାନ୍ଦ ।

### ରାଗ ଚକ୍ରକେଳି ।

କୁରୁସଭାରେ ଦ୍ରୌପଦୀ କହନ୍ତି । ସାବଧାନ ହୋଇ ଶୁଣ ନୃପତି । କପଟୀ ନନ୍ଦନ୍ଦ ପ୍ରଭୁ ନାରାୟଣ । ତାଙ୍କ ମହିମା ନାହିଁ କି ଶୁଣିଣ । ୨ । ସତ୍ୟଯୁଗ କଥା ଗୋଟି କହିବା । ତୁମ୍ଭ ମନରୁ ସଂଶୟ ଦହିବା ॥ ସିଂହ ଶୃଗାଳ ଏ ବେନି ଚରିତ । ଏକମନେ ଶୁଣ ହେ ନରନାଥ । ୪ । ଏକ ବନମଧ୍ୟରେ ସିଂହ ଥାଇ । ତହିଁ ପୁଷ୍କରିଣୀ ଏକ ଅଛଇ ।୫। ଅତି ତୃଷାର୍ତ୍ତ ହୋଇ ଶଶା ଗଲା । ଜଳଘାଟରେ ସିଂହକୁ ଭେଟିଲା । ୬ । ଯାହାଠାରୁ ଯେ ବଳୀୟାର ହୋଇ । ତାକୁ ଦେଖିଲେ ପ୍ରାଣେ ଡର ଥାଇ । ୭ । ସିଂହ ନିକଟେ ଶଶାକୁ ଦେଖିଲା । ତାକୁ ଭକ୍ଷିବ ବୋଲି ଗୋଡ଼ାଇଲା । ୮ । ଶଶା ପଳାଇ ପବନଙ୍କ ଖରେ । ଭୟେ ପଶିଲା ଶୃଗାଳ ବିଳରେ ।୯। ତହିଁ ମଧ୍ୟରେ ଦେଖିଲା ଶୃଗାଳ । ଶଶା ପାଞ୍ଚିଲା

Digitized by PPRACHIN, SOA

ପୂରିଲା ମୋ କାଳ । ୧୦ । ସିଂହ ଭୟରେ ପଶିଲୁ ବନରେ । ଏବେ
ପଡ଼ିଲୁ ଶୃଗାଳ ମୁଖରେ । ୧୧ । ମୋର ନିଶ୍ଚୟ ହୋଇଲା ମରଣ ।
ଶଶା ଡ଼ାକିଲା ବଣ ନାରାୟଣ । ୧୨ । ତୁମ୍ଭେ ନ ରଖିଲେ ହେଲୁ
ଅନାଥ । ଏଥୁଁ ନାହିଁ ପ୍ରଭୁ ଆଉ ଆରତ ।୧୩। ଶଶା ଆରତ ଗୋବିନ୍ଦ
ଶୁଣିଲେ । ରକ୍ଷାକଲୁଁ ଅଜ ବୋଲି ବୋଇଲେ ।୧୪। ଶଶାକର୍ଣ୍ଣେ
ବଜେ କଲେ ଗୋବିନ୍ଦ । ତାକୁ ଶିଖିଲା ସତ୍ରୁକଥା ଛନ୍ଦ ।୧୫। ଯହୁଁ
ଶୃଗାଳ ଦେଖିଲା ଶଶାକୁ । ବଡ଼ ହରଷ କରିଲା ମନକୁ ।୧୬। ତାକୁ
ଖାଇବା କଥା ମୂଳକଲା । ତୁରେ କାହିଁକି ଅଇଲୁ ବୋଇଲା । ୧୭ ।
ଶଶାବୋଇଲେ ଦେବ ଶୁଣ ଉତ୍ତର । ସର୍ବଜନ୍ତୁ ପେଷିଲେ ତୁମ୍ଭ ପୂର ॥
ମୋତେ ବୋଇଲେ ଶଶା ବେଗେ ଯିବୁ । ଗର୍ତ୍ତମଧ୍ୟରୁ ଶୃଗାଳ
ଆଣିବୁ ।୧୯। ସେ ଯେ ନୃପତି ହୋଇବେ ବନରେ । ସର୍ବେ ସେବିବୁ
ତାହାଙ୍କ ପଦ୍ମରେ । ୨୦ । ସର୍ବଜନ୍ତୁଙ୍କ ପରେ ହେବେ ରଜା । ଅମ୍ଭେ
ହୋଇବା ତାହାଙ୍କ ପରଜା । ୨୧ । ତେଣୁକରି ଅଇଲି ତୁମ୍ଭ ପାଶ ।
ବେଗେ ନୃପତି ହେବ ବେଗେ ଆସ । ୨୨ । ଶୁଣି ଶୃଗାଳ ହରଷ
ହୋଇଲା । ଶଶା ମୁଖକୁ ଅନାଇ ବୋଇଲା । ୨୩ । ଯେତେବେଳେ
ରଜପଣେ ବସିବି । ତୋତେ ମନ୍ତ୍ରୀପଣେ ଶାନ୍ତୀ ବାନ୍ଧିବି । ୨୪ । ଶୃଳ
ଗର୍ତ୍ତରୁ ହୁଅଇ ବାହାର । ଶଶା ବୋଲେ ଦେବ ହୁଅ ଅଗର । ୨୫ ।
ତୁମ୍ଭେ ନୃପଦେଣ୍ଟେ ଭଜନ । ସ୍ଥିର ସେବକ ମୁଁ ଅଟେ ଜନନ ।୨୬।
ତୁମ୍ଭେ ହେଲେକର ଦେବ ଅଗରେ । ମୁହିଁ ଯାଉଛି ତୁମ୍ଭର ପଛରେ ॥
ଶଶା କପଟ ଜାଣି ନ ପାରିଲା । ଗର୍ତ୍ତମଧ୍ୟରୁ ବାହାର ହୋଇଲା ॥
ସିଂହ ଜଗି ବସିଥିଲା ଦ୍ୱାରକୁ । ଶୀଘ୍ର ମାଡ଼ି ବସିଲା ଶୃଗାଳକୁ ॥
ଶଶା ଗୋବିନ୍ଦ ଅଶ୍ରୁ ନେବାରୁ । ପ୍ରାଣ ପାଇଲା ଦୁହିଙ୍କ ମୁଖରୁ ।୩୦
ତୁମ୍ଭେ ନରନାଥ କର ନୃପତି । ତାଙ୍କ ଚନ୍ଦ୍ରେ ଲଜ ନ ଥାଇ ଦୁର୍ଗତି ।୩୧
ଶୁଣି ଦୁର୍ଯ୍ୟୋଧନ ରେଷ ବହିଲା । ଦୁଃଶାସନ ମୁଖ ଗୁହିଁ ବୋଇଲା ॥
ପେଡ଼ଦ୍ରୌପଦୀ ଅଙ୍ଗରୁ ବସନ । ସଭାଜନେ ଦେଖନ୍ତୁ ଯହୁବନ ।୩୨।

Digitized by PPRACHIN, SOA

ହର କେମନ୍ତେ ଏହାଙ୍କୁ ରଖିବ । ପେଟ୍ଟ ବସନ ମନ୍ତ୍ର ସ୍ତବେ ଗିବ ॥
ଏହା ଶୁଣି ଦୁଃଶାସନ ଉଠିଲା । ଯାଇଁ ଦ୍ରୌପଦୀପାରିଧେ ମିଳିଲା ।୩୭
ଦୁଃଶା ଅଙ୍ଗରୁ କାଢ଼ନ୍ତେ ବସନ । ସତୀ ବୋଲେ ରଖ ରଖ ବଚନ ॥
ବସି ଅଛନ୍ତି ମୋ ପଞ୍ଚଭର୍ତ୍ତାଏ । ଏତେବେଳେ ମୁଁ କହିବ କଥାଏ ॥
ଦେଖା ଚାହିଁ ଯୁଧିଷ୍ଠିରବଦନ । ଅତି ଅରତେ କରନ୍ତି ରୋଦନ ।୩୮
ସତୀ ଯୁଧିଷ୍ଠିଦେବଙ୍କ ଚରଣ । ଧ୍ୟାନ କ୍ଷମା ଭରତରେ ଶରଣ । ୩୯ ।



# ଷଷ୍ଠ ଛାନ୍ଦ ।

ସ୍ୱର ଚନ୍ଦ୍ରାଦେଇଆଷ ।

ଯୁଧିଷ୍ଠିରଙ୍କି ଚାହିଁ ଚନ୍ଦ୍ରମୁଖୀ । ଛନ ଛନ କଲେ ବେନି ଅକ୍ଷି । କେଉଁଦେବ ତୁମ୍ଭର ପରସ୍ତ ଠାକୁର ଆଉଁ ହେଲ ମୁହିଁ ଭରମାକ୍ଷୀ ହେ ଶ୍ରେ ଦେବ । ୧ । ତୁମ୍ଭେ ବୋଲାଅ ଯେ ଧର୍ମରାଜା । ସର୍ବ ନୃପତି କରନ୍ତି ପୂଜା । ମହାସଭାତଳେ ବବସ୍ଥ କରୁଛି ତୁମ୍ଭଙ୍କୁ ନ ଦୋହବା ଏ ଲଜ୍ଜା ହେ । ୨ । ପୁଣି ଅର୍ଜୁନ ମୁଖକୁ ଚାହିଁ । ଶୋକେ ଗଦଗଦ ହୋଇ କହି । ବାସବନନ୍ଦନ ମୋଠାରେ ଭମନ ଏବେ ପ୍ରସନ୍ନ ନୁହଁ କପାଇଁ ହେ । ଗାଉଣ୍ଡୀ(?)ମା ତୁମ୍ଭେ ଦ୍ୱିଜସ୍ତୁ କୃଷ୍ଣ ବୋଲାଅ । ମୋର ଲକ୍ଷଣ ଜରୁପେ ସହ । ଧିକ ପୌରୁଷ ଧିକ ତୁମ୍ଭ ପ୍ରାଣେ ଜୀବେ ଅଛ କି ମରଛ କହ ହେ । ୪ । ଦେଖା ଦ୍ରୌପଦୀଠାରୁ ଏ ବାଣୀ । ପାର୍ଥ ଅର୍ଜୁନ ଶ୍ରବଣେ ଶୁଣି । ନ ଜାଣି ଧିକ୍କାର କରୁ ଯୋଷାମଣି ମୋର ପ୍ରତିଜ୍ଞା ଜାହୁଁ କି ଶୁଣି ଗୋ । ସୁନ୍ଦରୀ । ୫ । ପୂର୍ବେ ଗୋବିନ୍ଦ ଦୈତ୍ୟ ଅଇଲ ଘରେ ସତ୍ୟଭାମା ହରଣେଇ । ରଖ ହେ ଅର୍ଜୁନ ବୋଲି ସତ୍ୟଭାମା ଅତି କରୁଣରେ ଡାକଦେଲା ଗୋ । ସୁନ୍ଦରୀ । ୬ । ମୋର କର୍ଣ୍ଣେ ସେ

Digitized by PPRACHIN, SOA

ତାଙ୍କ ସମ୍ଭାଳି । ପୁଣି ଶତଧନୁ ଦେଲା କହ୍ନ । ଶରେ ଶର ଭେଦ
କରିଲ ଅଚ୍ଛାଦ ନ ପାରିଲା ଅଉ ଦୈତ୍ୟ ଯାଇ ଗୋ । ସୁନ୍ଦର । ୭
ଯୁଦ୍ଧେ ଗୋବିନ୍ଦ ଦୈତ୍ୟଙ୍କୁ ମାରି । କୃଷ୍ଣ ସତ୍ୟଭାମାକୁ ହକାରି
ରୈବତ ଗିରିରେ କୃଷ୍ଣଙ୍କୁ ଭେଟିଲ ଦେଲ ସତ୍ୟଭାମା ନେଇକରି
ଗୋ ।୮। ସଖି ମୋତେ ନ କର ଧିକ୍କାର । କୁରୁ ସୈନ୍ୟହିଁ କେତେ
ମାତ୍ରେ । ଶରେ ଶରେ ସବୁ ମୋହିତ କରନ୍ତି ଅଛି ନାହିଁ ଦୃଷ୍ଟି ର-
କର ଗୋ ।୯। ବୀର ଅର୍ଜୁନ ମୁଖୁଁ ଏ ବାଣୀ । ଦେବୀ ଦ୍ରୁପଦକୁମାରୀ
ଶୁଣି । ନକୁଳ ମୁଖକୁ ଅନାଇ ବୋଇଲେ ପାଣ୍ଡୁନନ୍ଦନଙ୍କ ପାଟରାଣୀ
ହେ । ନକୁଳ ।୧୦। ଅହେ ବାବୁ ଅଶ୍ୱିନୀକୁମାର । ତୁମ୍ଭେ ବୀରମଧ୍ୟେ
ବଳୀୟାର । ମୋତେ ସଭାତଳେ ଉଲଗ୍ନ କରୁଛି ତୁମ୍ଭେ ପାରିଲେହେଁ
ରକ୍ଷାକର ହେ ।୧୧। ତୁମ୍ଭେ ଅଶ୍ୱିନୀ ସୁତ ବୋଲାଅ । କରେ ନବନୀ
କୁନ୍ତ ବହ । ଧିକ ବୀରପଣ ଧିକ ତୁମ୍ଭ ପ୍ରାଣ ଏହା ଦେଖି ଯା ଧରିଛ
ଦେହ ହେ ।୧୨। ଶୁଣି ନକୁଳ ବୋଲେ ବଚନ । ସଖି କର୍ମରେ
ଯାହା ଲିଖନ । ବିଧାତାପୁରୁଷ କରିଥାଇ ଯାହା କେହି କରି ନ ପାରିବ
ଆନ ଗୋ ।୧୩। ସଖି ମୋତେ ନ କର ହିଂସାସ । ଯେବେ ଅଚ୍ଛି
ଦ୍ୟନ୍ତେ ଧର୍ମଶିଷ୍ୟ । କୁରୁସୈନ୍ୟଙ୍କୁ ମୁଁ କୁନ୍ତମୁନେ ସୁନ୍ଦେ ପେଷିଣ ଅନ୍ତ
ଶମନପାଶ ଗୋ ।୧୪। ପୁଣି ସହଦେବ ମୁଖ ଚାହିଁ । ଶୋକେ ବୋଲୁ-
ଛନ୍ତି ଚନ୍ଦ୍ରମୁଖୀ । ତୁମ୍ଭେ ମନ୍ତ୍ରିବର ଯୁଧିଷ୍ଠିରଙ୍କର ଭୂତ ଭବିଷ୍ୟ ବୁଝ
ବତାଇ ହେ । ସୁମନ୍ତ୍ରି ।୧୫। ଅଛି ଏତେ ଅସ୍ତ୍ରଯୁଦ୍ଧ ଶକତ । ନ ଜାଣ
କ ପଡ଼ିବ ବିପତ୍ତି । ଆଗହୁଁ ମୋତାରେ ନ କଲ ଗୋଚର ଏବେ
ହରିବ କାଏ ଦୁର୍ଗତି ହେ ।୧୬। ମନ୍ତ୍ରିବର ବୋଲେ ସଖି ଶୁଣ । ଏ
ଯେ ଦେବତାଙ୍କୁ ଭିଅଣ । ତୁମ୍ଭଙ୍କୁ କଷଣ ଦୋହିଲେ ସମୁଖି ନ
ମରିବେଟି ସେ ଦୁଷ୍ଟଗଣ ଗୋ । ସୁନ୍ଦର ।୧୭। ଏ ଯେ ଦୁର୍ଯ୍ୟୋଧନ
ଶତଭାଇ । ମହାମହାବୀର ଛନ୍ତି ରହି । ତୁମ୍ଭଙ୍କୁ କଷଣ ଦେଲେ ଦେବ
ଗଣ ଏହିମାନଙ୍କର ନାଶ ପାଇଁ ଗୋ । ସୁନ୍ଦର ।୧୮। ସଖି ମନରେ

Digitized by PPRACHIN, SOA

ଝରସ ନୃପ । ଦଣ୍ଡେ ମାଏ ଦୁଃଖ ସହି ତନ୍ଦ । ତୁମ୍ଭେ ତ ଜଗତଜନଙ୍କର ମାତ କପଁ। ମନରେ କରୁଛ କୋପ ଯୋ । ସୁନ୍ଦର । ୧୯ । ଶେଷେ ସହଦେବମନ୍ତ୍ରି ବାଣୀ । ବାମା ଏରୂପେ ନସ୍ତୁର ଶୁଣି । ଅନାଥ ତରୁଣୀ ପ୍ରାୟ ହୋଇ ପୁଣି ବେନି ନୟନୁ ବୁହାଇ ପାଣି ଯେ । ସୁନ୍ଦରୀ ।୨୦। ସତୀ ଚିନ୍ତାସାଗରେ ବୁଡିଲା । ଶରୀରରୁ ଜ୍ଞାନ ହାରିଗଲା । ଚନ୍ଦ୍ରମାବଦନ ହୋଇଲା ମଳିନ ସ୍ଥାନ ଭୀମା ଏ ରସେ ଭଣିଲା ହେ । ସୁଜନେ ।୨୧।



# ସପ୍ତମ ଛାନ୍ଦ ।

## ରାଗ କାଳୀ ।

ମୁନି କହନ୍ତି ଶୁଣ ନୃପତି କହିବା ଧବ୍ୟରସ । ହେଉଁ ବଦନ ପବନ ନାନ ବସିଛି ଭ୍ରାତ ପାଶ ।୧। ମନେ ଝରସ ଶଙ୍ଖନିଶ୍ୱାସ ନସେ ଛାଡ଼ଇ ଗାର । ବେନି ନୟନୁ ଲୋତକ ଖସି ପଡ଼ୁଛି ଝରଝର ।୨। କପୋଳେ କର ଦେଇଣ ଗାର ହୃଦରେ ଗୁରୁଚିନ୍ତା । ସନ୍ତାପ ଜଳେ ବୁଡ଼ିଲା ଛାଳେ ଦେଖି ଦ୍ରୌପଦୀ ବ୍ୟଥା ।୩। ଦ୍ରୌପଦୀ ବୋଲେ ଭୀମଙ୍କୁ ବୁହି ପବନସୁତ ଦେଖ । ତୋ ପରି ଗାର ଥାଉଁ ମୋହର ହେଉଛି ଏତେ ଦୁଃଖ । ୪ । ଏ ଦୁଃଶାସନ ପାମର ସ୍ଥାନ ଧଇଲା ମୋର କେଶ । ଭୁ ନେଇ ଯେନ ଦେଖଁ ପାବନ ନ ପାଉ ମନେ ସେଷ ।୫। ବାଉନ ଭୀର ଗଦା ତୋହର ନାହିଁ କି କରେ ଯେନ । ସିଂହଘରଣୀ ଶୃଗାଳ ଅଣି କରୁଛି ସ୍ଥାନମାନ ।୬। ଭୀମ ବୋଲଇ ଶୁଣରେ ସଖି ମୋହର କେଉଁ ଦୋଷ । ମୋ ଗାରପଣ ପ୍ରତିଜ୍ଞା ହାଣ ଯୁଧିଷ୍ଠି କଲେ ନାଶ ।୭ ବାରେ ଅନାଇ ଯେବେ ସେ ଠାର ଦିଅନ୍ତେ ମୋତେ ତହୁଁ । ହସ୍ତିନା ପୁର କରନ୍ତି ଚୂର ତୋହର ଦେଖୁ ଦେଖୁ ।୮। କଦଳୀବନ ହେତୁ ପବନବାତେ ପଡ଼ଇ ଲେଉଟି । ରଥୀ ସାରଥି ଗଜ ପଦାତ କ୍ଷଣକେ

Digitized by PPRACHIN, SOA

ଦ୍ୟନ୍ତ୍ର ପିଟି । ଏ ଶତଖ୍ୱର ଗଦା ମୋହର ବୁଝିବ ବେଣୀକର ।
ଏ ଦୁର୍ଯ୍ୟୋଧନ ସହିତେ ସୈନ୍ୟ ପେଶନ୍ତ୍ର ଯମପୁର । ୧୦ । ଦ୍ରୌପଦୀ
ବୋଲେ ଅହେ ପାବନ ଧ୍ୱଜ ତୁମ୍ଭର ପ୍ରାଣ । କର୍ଣ୍ଣଙ୍କ ହୋଇ କ୍ଷାନ୍ତ
କପାଇଁ ପାଣ୍ଡବ ପାଞ୍ଚଜଣ । ୧୧ । ଲଜ୍ଜା ତୁମ୍ଭର ନାହିଁ ମୁଖର ଜଣେ
ରକ୍ଷିଲ ନାହିଁ । ତୁମ୍ଭଙ୍କୁ ଅଛେ କରଣ ମୁହିଁ ଅନାଥ ହୋଇଲିଁ ।୧୨
ତୁମ୍ଭେ ମହତ ବୋଲି ବହୁତ ଅଛେ ମୁଁ କରଥିଲି । ଅନାଥା ନାସ୍ତ
ପରସ୍ପୃ ହୋଇ ବଅର୍ଥେ ଦନ ନେଲ । ୧୩ । ଲକ୍ଷେ ନୃପତି ମଧ୍ୟରୁ
ମୋତେ କପାଁ ଅଣିଲ ଜାଣି । ପଞ୍ଚସ୍ୱରସ୍ତ ଥାଇଁ ମୋ କେଶ ଧଇଲା
ଦୁଃଶା ପୁଣି ।୧୪। ଧ୍ୱଜ ତୁମ୍ଭର ଗଦା କୋଦଣ୍ଡ ଧ୍ୱଜ ତୁମ୍ଭର ବାହା ।
ପାମର ଦୁଃଶା ଉଲଙ୍ଗ କରେ ଜଣେ ନୋହିଲ ସାହା । ୫। ଦ୍ରୌପଦୀ
ଙ୍କର ଏ କଟୁଗିର ଶୁଣିଣ ବୃକୋଦର । ସହି ନ ପାରି ଉଠିଲା ଘୋର
ବେଇଣ ଅଣ୍ଡୁଭର ।୧୬। ରେ ରେ ଶବଦ କରଣ ଘୋର ଗୁଡ଼ଲା ଘର୍ଘ
ରହ । କ୍ର ଅଦଭୁତ ହୋଇ ମନ୍ଦରଗିର ପଡ଼ିଲା ଝଡ଼ । ୧୭ । ଲକ୍ଷେ
ଯୋଜନ ଯମଭୁବନ ଅସ୍ଥାନ ଟେଣେ ଗଲା । ମେରୁ ସହିତେ ଭୂମି
ସପତପାତାଳ କମ୍ପିଗଲା ।୧୮। ଭୀଷ୍ମ ଦ୍ରୋଣହିଁ ସହିତେ ସେହି ସଭାରେ
ବସିଥିଲେ । ଭୀମ ତର୍ଜ୍ଜନ ଗର୍ଜ୍ଜନ ଶୁଣି ଅସ୍ଥାନ ଛାଡ଼ିଗଲେ ।୧୯। ଭୀଷ୍ମ
କହନ୍ତି ଦ୍ରୋଣ ଶୁଣନ୍ତି ଭୋ ଗୁରୁଦେବ ଦେଖ ! ଏ ଭୀମସେନ କୁପିତ
ମନ ଦେଖି ଦ୍ରୌପଦୀ ଦୁଃଖ । ୨୦। ଏକା ଯୁଧିଷ୍ଠି ଦେବ ଅଜ୍ଞାତି ଯେବେ
ତାହାଙ୍କୁ ଦେବ । ଦୁର୍ଯ୍ୟୋଧନର ସହିତେ ସୈନ୍ୟ କ୍ଷଣେକ ବଞ୍ଚିବ ।
ଜଣେ ଶରଣ ବୋଇଲେ ଭୀମ ଦ୍ୱିଗୁଣ କରି ମାରେ । ଯଦି କ୍ୱପରେ
ଦ୍ୱିତୀୟ ଯମ ବୋଲନ୍ତି ବୃକୋଦରେ ।୨୨। ଦୁର୍ଯ୍ୟୋଧନଙ୍କ ସଙ୍ଗେ ନିକଟେ
ଥିଲା ଯେ ଦୁଃଶାସନ । ଭୀମ ତର୍ଜ୍ଜନ ଗର୍ଜ୍ଜନ ଶୁଣି ମିଳିଲା ସନ୍ନିଧାନ ।
କ୍ରୋଧେ ବୋଲଇ ଭୀମଙ୍କୁ ମୁହିଁ କି ରେ ପାମର ବାଇ । ଗତ ଅଗତ
ଜାଣିର ମତ ଜାଣିଲୁ କରେ ତୁହି । ୨୪ । ଯେବେ ସେବକମତର
ହେଲକ ହୋଇଲ ପାଣ୍ଡବଣେ । କର୍ଣ୍ଣଙ୍କ ହୋଇ ଜାଇ କପାଇଁ କରୁଛଏବେ

Digitized by PPRACHIN, SOA

ସ୍ଥାଣ । ୨୫ । ଯେ ଯେଉଁ ସେବା ତାହା କହୁବା ପାଣ୍ଡବ ପାଞ୍ଚଭାଇ । ପ୍ରମାଣ କଥା କୋଷ୍ଠାକୁ କପଁା ଦ୍ୱନ୍ଦ୍ୱ କରୁଛୁ ତୁହି । ୨୬ । ଧର୍ମଯୁଧିଷ୍ଠିର ପାରେ ଉଠି ବସିଲାଠାରେ ଥାଇ । ରଥ ଦଉଡ଼ା ଯେତେକ ଲୋଡ଼ା ନିତ୍ୟ ରଜବ ସେହୁ । ୨୭ । ଅର୍ଜୁନ ବୀର ଘୋଷଘରର ହୋଇବ ସୂପକାର । ତୁ ବୃକୋଦର ଭିତରପୁରେ ଦେବୁ ଜଗତେ ନୀର । ୨୮ । ନକୁଳବୀର ସିଂହଦୁଆର ଜଗିଣ ବସିଥିବ । ଜାରଜାତକା ପାଣ୍ଡବେ ଆମ୍ଭ ସେବାରେ ଧନ ନେବ । ୨୯ । ଏ ମନ୍ତ୍ରିବର ପାଣ୍ଡୁକୁମର ଅମୃତ ସାନ ଭାଇ । ଅର୍ଦ୍ଧେକ ରାଜ୍ୟ ଏହାଙ୍କୁ ଦେଇ କରିବା ନୃପସାଇଁ । ୩୦ । ଭୀମ ବୋଲଇ ଦୁଃଶାକୁ ଶୁହିଁ ଯୁଧିଷ୍ଠି ଅଜ୍ଞା ନାହିଁ । ନୋହିଲେ ସୁଟଢ଼କେ ତୋ ଶିର ଧଅନ୍ତି ମୁଁ ଛିଣ୍ଡାଇ । ୩୧ । ଶୁଣିଣ ଦୁଃଶା ଅତ୍ୟନ୍ତ ରୋଷ ହୋଇଲା ପରଚଣ୍ଡ । ବୋଲଇ ତୋ'ର ଗଦାରେ ଶିର କରିବ ମସି-ଖଣ୍ଡ । ୩୨ । ତା ଶୁଣି ଭୀମ କୋପ କରିଣ ବୋ'ଲଇ ରେ ପାମର । ଗଦାଟେକରେ ଅଦ୍ୟ ସମରେ ଛେଦିବି ତୋର ଶିର । ୩୩ । ଏମନ୍ତ କହି ବୀର ତୁହାଇ ଧଇଲା ବେନିଗଦା । ରେ ରେ ଶବ୍ଦ କରଣ ବୀର ମାଇଲା ବେନିକୁଦା । ୩୪ । ମାନଗୋବନ୍ଦ ଦେଖିଣ ଦ୍ୱନ୍ଦ୍ୱ ସନ୍ନ୍ୟଜନଙ୍କୁ ଚାହିଁ । ବୋଇଲେ ଏବେ ନିଶ୍ଚିତ ହେଲେ ଯୁଧିଷ୍ଠି ନୃପସାଇଁ । ୩୫ । ତା ସାନ ଭାଇ ଦ୍ୱନ୍ଦ୍ୱ ଉଠାଇ ହେଉଛି ଛଟପଟ । ନିସତ ହେଲେ ସୁବେଶ ବୋଇଲେ ନେଇ ତା ରାଜ୍ୟପଟ୍ଟ । ୩୬ । ଶୁଣି ଯୁଧିଷ୍ଠି ସଭାରୁ ଉଠି ବୋଇଲେ ଅରେ ଭୀମ । ଝଥା ନ ଜାଣୁ ତୁ ଅକାରଣ କପଁା କରୁଛୁ ତମ । ୩୭ । ତୋ ମୂର୍ଖବୁଦ୍ଧି ଅଛଅବଧି ନ ଗଲା କାଛି ଛଡ଼ା । ଜାଣିଲି ତୋର ମୂର୍ଖ ଢଗରେ ତୁ ହେଲୁ ଘରବୁଡ଼ା । ୩୮ । ଦ୍ରୌପଦୀ ପରି ଶତ ଯୁବତୀ ମିଳିବେ ଅରେ ଭାଇ । ନିଜ ସୋଦର ମସ୍ତକ ଭାଇ ପାଇବା ଅଛି କାହିଁ । ୩୯ । ଭ୍ରାତ ସୋଦର ଦ୍ୱନ୍ଦ୍ୱ ଆରମ୍ଭ କରୁଛୁ କିସ ପାଇଁ । ଶୁଣି କୁଟିଳ ପବନସୁତ ଯୁଧିଷ୍ଠି ମୁଖ ଚାହିଁ । ୪୦ । ଅନ୍ଧ ରାଜନ ଶତନନ୍ଦନ ମାଇ କହନ୍ତି ପଦ । କାହାରବଳେ ଏ କଇ

Digitized by PPRACHIN, SOA

ପାରେ ହସ୍ତେ ମୋ ଥିଲେ ଗଦା । ୪୧ । ପାର୍ଥ କହଇ ଧର୍ମ ନୃହଇ ଅନ୍ତୁର ଜ୍ୟେଷ୍ଠଙ୍କର । ତାହାଙ୍କ ଆଜ୍ଞା ମେଣ୍ଟନ କଲେ ପଶ୍ଚାତେ ଦୁଃଖ ପାଇ ।୪୨। ନୂହ କାତର ନୁହ ଅସ୍ଥିର ନୂହ ହେ କୋପମୂର୍ତ୍ତି । ଅର୍ଜ୍ଜୁନ ବୋଲେ ପବନସୂତ ବସିଲା ହୋଇ ଶାନ୍ତ । ୪୩ । ନକ୍ଷତ୍ରମଧ୍ୟେ ଚନ୍ଦ୍ର ଯେସନେ ବସନ୍ତ ଦଶୁଥାଇ । ସ୍ୱହସ୍ତଙ୍କ ମଧ୍ୟରେ ସାର ସେହସ୍ତୁରେ ଦଶଇ । ୪୪ । ଭୀମ ବୋଇଲେ ଦ୍ରୌପଦୀ ଗୃହ ନ କର ମୋତେ ମାନ । ଯେବଣ କରେ କେଶ ତୋହର ଧରିଛି ଦୁଃଶାସନ । ୪୫ । ଛେଦବ ଶିର ଭୁଜ ତାହାର ଶପଥ ଯୁଦ୍ଧସ୍ଥିର । ଯାଇ ପାଶର ାଲ୍ଲଣ ସାର ହୃଦେ କାଟିଲା ଗାର । ୪୬ । ଦେଖି କୃଷ୍ଣୁର ପାଣ୍ଡବଙ୍କର ସଖା ମନରେ ବ୍ୟଥା । ପାଇଣ ଦେଖା ରସିଲେ ଲୁବ ସୁମର ଜଗନ୍ନାଥ ।୪୭ ମନ ପବନ ଚୈତନ୍ୟଧ୍ୟାନ ଗୋବନ୍ଦ ପାଦେ ଦେଇ । ମନ ବଇଷ୍ଣ କହେ ଏ ରସ ଭୀମା ଧୀବର ଧ୍ୟାଯି । ୪୮ ।



## ଅଷ୍ଟମ ଛାନ୍ଦ ।

### ବଙ୍ଗମତଅଶ୍ୱ ବାଣୀ ।

ଏଥୁ ଅନନ୍ତରେ ଶୁଣ ଦିବ୍ୟ ବଚନ । ଦ୍ରୌପଦୀ ଡାକଲେ ରକ୍ଷ ଶ୍ରୀ ଭଗବାନ ।୧। ତୁମ୍ଭେ ନ ରଖିଲେ ମୁଁ ଯେ ହେଲି ଅନାଥ । ରକ୍ଷ ରକ୍ଷ ଜଗନ୍ନାଥ ଦୁଃଖିସଙ୍ଗାତ । ୨ । କୁରୁସଭାତଳେ ମୋର ଯାଉଛି ମାନ । ଏତେବେଳେ ରକ୍ଷାକର ଦୁଃଖନାଶନ । ୩ । ଲଗାଇଲେ ପଦ୍ମ- ପାଦତଳରେ ଧ୍ୟାନ । ଦ୍ୱାରକାରେ ଯେ ଜାଣିଲେ ଶ୍ରୀ ଭଗବାନ । ୪ । ସତ୍ୟଭାମା ସଙ୍ଗେ ପଶା ଖେଳନ୍ତି ହରି । ଦ୍ରୌପଦୀର ଡାକ ପ୍ରଭୁ ଶ୍ରବଣ କରି ।୫। ରଖିଲୁ ରଖିଲୁ ଅମ୍ଭେ ବୋଲି ବୋଇଲେ । ଅକାରନ୍ନିମିତ

Digitized by PPRACHIN, SOA

ଭୁଜ ବେଗେ ଟେକିଲେ । ୬ । ସତ୍ୟଭାମା ବୋଲୁଛନ୍ତି ଶ୍ରୀକୃଷ୍ଣଙ୍କୁହିଁ । କେଉଁଠାରେ କାହାକୁ ରଖିଲ ଗୋସାଇଁ । ୭ । ତମ୍ଭୁ ଅଛି ଦାନ ମୋର ପଡ଼ୁଛି ସାର । କାହାକୁ ରଖିଲ କହ ପ୍ରାଣେଶ୍ୱର । ୮ । ଗୋବିନ୍ଦ ବୋଇଲେ ପଶାଖେଳ ନୁହଇ । ଦ୍ରୌପଦୀ ଡାକିଲେ କୁରୁସଭାରେ ଥାଇଁ । ୯ । ଦୁର୍ଯ୍ୟୋଧନ ସଙ୍ଗେ ଧର୍ମ ପଶା ଖେଳିଲେ । ଅବିବେକ ପଣେ ଦ୍ରୌପଦୀଙ୍କି ହାରିଲେ ।୧୦। ବିବସ୍ତ୍ର କରୁଛି ତାଙ୍କୁ ଦୁଃଶାସନରେ । ଦ୍ରୌପଦୀ ଡାକିଲେ ମୋତେ ରକ୍ଷ ଠାକୁର ।୧୧। ସତ୍ୟଭାମା ବୋଇଲେ ଏ ମିଥ୍ୟା ବଚନ । ହସ୍ତିନାକୁ ଦ୍ୱାରକା ଯେ ଲକ୍ଷେଯୋଜନ । ୧୨ । ଏତେଦୂରେ କି ପ୍ରକାରେ ଶୁଣିଲ ଡାକ । ମିଛେ ମୋତେ ଭଣ୍ଡାଉଛ ପ୍ରାଣନାଥକ ।୧୩। ଯେବେ ଦ୍ରୌପଦୀର ତୁମ୍ଭେ ହୋଇଛ ସାହା । ମୋ ମନ ପରତେ ନୁହେ ଦେଖାଅ ତାହା । ୧୪ । ଗରୁଡ଼କୁ ସ୍ମରିଲେ ରୁକ୍ମିଣୀନାହା । ରମ୍ୟକଦ୍ୱୀପରେ ପକ୍ଷୀ ଜାଣିଲା ତାହା । ୧୫ । ଗରୁଡ଼ ବୋଇଲେ ତାଙ୍କ ପହିଙ୍କି ସ୍ମରୁହିଁ । ଅମୃତ ଭୋଜନ ମୋତେ ପିତା ଲାଗଇ । ୧୬ । ମଦନା ବୋଲଇ ଶୁଣ ପ୍ରାଣେଶ୍ୱର । ପ୍ରସାଦ ପଡ଼ିଲା ଅବା ଦ୍ୱାରକାପୁର । ୧୭ । ଶୁଣିକର ଖଗବର ବେଗେ ଚଳିଲା । ଲକ୍ଷଯୋଜନକୁ ଡେଣା ବିସ୍ତାର ଦେଲା । ୧୮ । ଗୋବିନ୍ଦ ସ୍ମରଇ ପକ୍ଷୀ ଗଲାକ ଚଳି । କ୍ଷଣକଭିତରେ ଯାଇଁ ଦ୍ୱାରକା ମିଳି । ୧୯ । ଅସ୍ଥାନ ଉପରେ ବସିଛନ୍ତି ଗୋସାଇଁ । ପଦ୍ମପାଦତଳେ ପକ୍ଷୀ ପଡ଼ିଲା ଯାଇଁ ।୨୦ ଉଠ ଉଠ ବୋଲି ପ୍ରଭୁ ଧଇଲେ ଟେକି । ଦେଖିଣ ହରଷ ସତ୍ରାଜିତ ଦୁଲାଳୀ । ୨୧ । ଗରୁଡ଼ ବୋଲଇ କିପାଁ କଲ ସ୍ମରଣ । କି କାର୍ଯ୍ୟ କରିବି କହ ଲକ୍ଷ୍ମୀରମଣ । ୨୨ । ଗୋବିନ୍ଦ ବୋଇଲେ ବାବୁ ପିଠି ବିସ୍ତାର । ଆମ୍ଭଙ୍କୁ ଘେନିଣ ଯିବୁ ହସ୍ତିନାପୁର । ୨୩ । ଶୁଣିକରି ଖଗେଶ୍ୱର ପିଠି ବିସ୍ତାରି । ସତ୍ୟଭାମା ଘେନି ପ୍ରଭୁ ବିଜେ କରି ।୨୪। ପ୍ରବେଶ ହୋଇଲା ଯାଇଁ ହସ୍ତିନାପୁରେ । ଅଦୃଶ୍ୟହୋଇ ରହିଲେ ଅନ୍ତରୀକ୍ଷରେ । ମୁଖ ଟେକି ଦ୍ରୌପଦୀ ଯେ ଦେଖିଲେ ଅନାଇ । ଗରୁଡ଼ପିଠିରେ ବଳେ

Digitized by PPRACHIN, SOA

ତ୍ରୈଲୋକ୍ୟସାଇଁ ॥ ଚର୍ମନେତ୍ରେ ଯେନ ଦେଖା କଲେ ଦର୍ଶନ । ବସ୍ତ୍ରହରି
ବସ୍ତ୍ରହରଣ ବୋଲି ବରନ ।୨୭। କୋଟି କୋଟି ଜନ୍ମେ ଯେତେପାତକ
ନମାର । ଶ୍ୱେତଦନ୍ତବଡ଼ଙ୍କା ଦେଖି ହୋଇଲା ଦୂର । ୨୮ । ଦ୍ରୌପଦୀ
ଡାକିଲେ ପ୍ରଭୁ ପଦ୍ମଲୋଚନ । ତୁମ୍ଭ ସେଠି ତ୍ରୈଲୋକ୍ୟ ପାଣ୍ଡୁନନ୍ଦନ ।
ରାଜସୂୟ ଯାଗକାଳେ ଦେବ ଅନନ୍ତ । ପ୍ରତିଜ୍ଞା ଘେନି ତୁମ୍ଭେ ଧଇଲ
ବ୍ରତ । ୩୦ । ମହିମା ମହିମା ନାହିଁ ବୋଲୁ ଯେ ଥାଅ । ଏବେ ଯୁଧି-
ଷ୍ଠିରଠାରେ ଦୟା ନ ବହ ।୩୧। କପଟପାଶାରେ ଜିଣି ରାଜ୍ୟ ସମ୍ପଦ ।
ସଭାତଳେ ବସାଇଛି ମାନଭେଦନ । ୩୨ । ମୋହର ଏ ଦୁଃଖ ପ୍ରଭୁ
କହିବ କେତେ । କେଶ ଧରି ଦୁଃଶାସନ ଅଣିଲା ମୋତେ ।୩୩। ବିବସ୍ତ୍ର
କରୁଛି ମୋତେ ଦୁଃଶା ପାମର । ତୁମ୍ଭେ ନ ରକ୍ଷିଲେ ମୁଁ ଯେ ହେବି
କାହାର । ୩୪ । ଚୋଟିକି ବୋଇଲେ ଛାଡ଼ ମନ୍ଦ ବେଦନା । ଏ ଗୁରୁ
କଥାକୁ କର୍ଣ୍ଣ କର ଶ୍ରବଣ ।୩୫। ଯେତେ ବସ୍ତ୍ର ଅଭ୍ୟାଗତେ ଦେଇଛ
ଦାନ । ଅଭ୍ୟାଗତଙ୍କଠାରେ ରଖାଇଛୁ ସେମାନ । ୩୬ । ସମ୍ପଦକାଳେ
ଯେ ଯାହା ଦାନ କରଇ । ବିପଦକାଳରେ ତାହା ତାକୁ ମିଳଇ ।୩୭।
ଅତିଥିଙ୍କୁ ସ୍ମରଣ କର ସତ୍ୱରେ । ଶତଗୁଣ ହୋଇ ତାହା ମିଳିବ
ବେଗେ । ୩୮ । ଗୋବିନ୍ଦଙ୍କ ଆଜ୍ଞା ପାଇଁ ଦ୍ରୌପଦୀ ସତୀ । ଅତିଥିଙ୍କୁ
ସ୍ମୃହିଁ ମନେ କରନ୍ତି ସ୍ତୁତି । ୩୯ । ହେ ପ୍ରଭୁ ଗୁପ୍ତାବରଣ ହେ ଅପ୍ରସଙ୍ଗା ।
ଅନୁଗ୍ରହ କର ମୋତେ ଦିଅ ବସନ । ୪୦ । ଏ ମାୟାସଂସାର ପ୍ରଭୁ
ତୁମ୍ଭର ଲୀଳା । ଯାହାକର ଦୀନବନ୍ଧୁ ବୁଡ଼ିଲା ଭେଳା ।୪୧। ଏ କଷ୍ଟରୁ
ପ୍ରଭୁ ମୋତେ କର ଉଦ୍ଧାର । ଶରଣ ମାଗୁଛି ପାଦେ ସ୍ୱାମୀ ପାମର ।୪୨



Digitized by PPRACHIN, SOA

# ନବମ ଛାନ୍ଦ ।

ରାଗ କଳହଂସ କେଦାର ।

ଶୁଣ ସୁଜନେ ମନ ଶ୍ରବଣ ଦେଇ । ଯାହା ଶୁଣନ୍ତେ କଳମଷ ଖଣ୍ଡଇ ହେ । କୃଷ୍ଣଚରିତ ଏହି ପୀୟୂଷରସ । ନଟବେ ସାଧୁଜନେ ଏ ରସେ ରସ ହେ ।୧। ଅଦୃଶ୍ୟରଥ ସ୍କନ୍ଦେ ଯାଉ ଯେ ଥିଲା । ଦ୍ରୌପଦୀ ସ୍ତୁତି ଶୁଣି ସ୍ତମ୍ଭିତ ହେଲା ଯେ । ପୁଚ୍ଛନ୍ତି ଜଗନ୍ନାଥ ସାରଥି ଗୁହିଁ । କପାଇଁ ସ୍କନ୍ଦେ ରଥ ଚଳଇ ନାହିଁ ହେ । ୨ । କେଉଁ ପାପିଷ୍ଠ ମୋର ଛୁଇଁଲା ଯାନ । କପାଇଁ ରଥ ନ କରଇ ଗମନ ହେ । ସାରଥି ବୋଲେ ଦେବ ଶୁଣ ଏମନ୍ତ । ଦ୍ରୌପଦୀ ଡାକୁଛନ୍ତି ହୋଇ ଆରତ ହେ ।୩। ସଭାକ ଅଣି କୁରୁସଙ୍ଘ ମଧ୍ୟର । ଉଲଗ୍ନ କରୁଅଛି ଦୁଃଶାସନ ପାମର ହେ । ଦ୍ୱାରକା ଚେଳେ ଅଛନ୍ତି ଶ୍ରୀପତି । ସେଠ ପାଇଁ ଦେଖ କରନ୍ତି ସ୍ତୁତି ହେ । ୪ । ଶୁଣି ତା ଜଗନ୍ନାଥ ହୋଇ ସନ୍ତୋଷ । ଛଦ୍ମ ମାୟୀ ହୁହଁକି ସାଇଲେ ପାଶ ଯେ । ବୋଇଲେ ବେନିଜନେ ଯାଅ ବହନ । ଅମ୍ଭ ଭଣ୍ଡାରୁ ନେଇ ଦଅ ବସନ ଯେ ।୫। ପାଟପଟଣୀ ଝୀନବସନ ଶାଢ଼ୀ । ଛପନକୋଟି ବସ୍ତ୍ର ଦଅ ସଜାଡ଼ି ଗୋ । ଦ୍ରୌପଦୀ ସନ୍ନିଧାନେ ବହନ ଚଳ । ଉଲଗ୍ନ କରୁଅଛି ଦୁଃଶା ପାମର ଖଳ । ୬ । ଅଦୃଶ୍ୟ ହୋଇ ଦେଖାପାଶେ ରହିବ । ବସ୍ତ୍ରକାଳେ ବସ୍ତ୍ର ଯୋଗାଇଦେବ ଗୋ । ଯେତେ ବସନ ଦୁଃଶାସନ କାଢ଼ିବ । ଖଣ୍ଡକୁ ଖଣ୍ଡ ଅଙ୍ଗେ ବେଢ଼ାଇଦେବ ଗୋ ।୭। ଶୁଣି ସେ ଛଦ୍ମା ମାୟା ବହନ ଗଲେ । ଭଣ୍ଡାରୁ ବସ୍ତ୍ର ଘେନି ବାହାର ହେଲେ ଯେ । ପ୍ରବେଶ ହେଲେ ଯାଇଁ ଦ୍ରୌପଦୀପାଶ । କହଇ ଶ୍ରୀମା କୃଷ୍ଣ ଚରଣେ ଆଶ ହେ । ୮ ।



Digitized by PPRACHIN, SOA

# ଦଶମ ଛାନ୍ଦ ।

## ରାଗ ପାହାଡ଼ିଆ କେଦାର ।

ସଭାରେ ଦୁର୍ଯ୍ୟୋଧନ ବଚନ ଡାକିଲା ଅରେ ହେ ଦୁଃଶାସନ କର ଗମନ ଫେଡ଼ ଦ୍ରୌପଦୀଅଙ୍ଗୁ ବସନ ରେ । ଦେଖିବା ତାର ବଦନ ସୁନ ସୁନ୍ଦର ଯଉବନ ଜଘନ କେମନ୍ତେ କର ଆଜ ରଖିବେ ଶ୍ରୀଭଗବାନ ରେ । ଏମନ୍ତ ଆଜ୍ଞା ଯହୁଁ କଲା ରାଜନ ହେ । ଶୁଣି ଉଠିଲା ଦୁଃଶା ପାମର ସ୍ଥାନ ଯେ । କରେ ଜୁଲୁଡ଼ ଅଙ୍ଗୁ ବସନ କାଢ଼ଇ ଧୃତରାଷ୍ଟ୍ର-ନନ୍ଦନ ଖଣ୍ଡେ କାଢ଼ନ୍ତେ ଖଣ୍ଡେକ ପୁଣି ଦେଖେ ନୂତନ ଯେ । ୧ । ଦେଖିଣ ଦୁଃଶାସନ ଚକିତ କହଇ ଦୁର୍ଯ୍ୟୋଧନ ଅଗ୍ରତ ଭୋ ଦେବ ତୁମ୍ଭେ ଶୁଣିମା ଜନ୍ମମାତର କାନ୍ତ ହେ । ଦ୍ରୌପଦୀ ଅଙ୍ଗେ ବସ୍ତ୍ର ବହୁତ ଏକ କାଢ଼ନ୍ତେ କେ ଉଦତ ଏ ଅଚମ୍ଭିତ କଥା ତଦନ୍ତ ବୁଝ କେମନ୍ତ ହେ । ଶକୁନି ମୁଖ ଚାହିଁ ଗାନ୍ଧାରୀସୁତ ଯେ । ବୋଲଇ ମାମୁ କହ ଏଥି ତଦନ୍ତ ଯେ । ଶକୁନି କହେ ନୃପତି ନାଥ ପଞ୍ଚପାଣ୍ଡବ ତାର ଗୋରସ୍ତ ପାଞ୍ଚଙ୍କ ପାଇଁ ପାଞ୍ଚ ପ୍ରକାର ପିନ୍ଧଇ ଦେତ ହେ । ୨ । ଏମନ୍ତ କୁଟ କପଟବାଣୀ ପାଞ୍ଚ କହିଲା ଯହୁଁ ଶକୁନି ଶୁଣି ହରଷ ହୋଇଲା କୁରୁକୁଳରାଜନ ଯେ । ଏହି ବଚନ ଶୁଣି ରାଜନ ଦୁଃଶାକୁ ଚାହିଁ ବୋଲେ ବଚନ ଉଠ ବହନ ତୁରିତ ଯାଇଁ ଫେଡ଼ ବସନ ରେ । ଶୁଣି ତା ଦୁଃଶା ଉଠିଗଲା ତୁରିତ ଯେ । ପୁଣି କାଢ଼ିଲା ଅଙ୍ଗୁ ବସ୍ତ୍ର ବହୁତ ଯେ । ପ୍ରଥମ ଖଣ୍ଡ ପକାନ୍ତେ କାଢ଼ି ଦ୍ୱିତୀୟଖଣ୍ଡ ଅଛଇ ଜଡ଼ି ଏମନ୍ତ କାଢିପକାଇ ଷଡ଼ି ଝବଇ ଚଉଡ଼ ଯେ । ୩ । ନଟକାରଣୀ ପରାୟେ ସେହି ସଭା ମଧ୍ୟରେ ସତୀ ଭ୍ରମଇ କୁବଳୟକେ ମୁଣ୍ଡିକା ଦେଇ ଯେହ୍ନେ ଭ୍ରମାଇ ଯେ । ପଟ୍ଟ ପାଟପଟନୀ ନେତ ବଙ୍ଗ ଶୁକଳ ଅନେକ ବସ୍ତ୍ର କୋଟିକ କୋଟି ବସନ ଦୁଃଶା କାଢ଼ି ପକାଇ ଯେ । ବସ୍ତ୍ର ଫେଡ଼ିଲା ଯାର ଦ୍ୱାଦଶ ଦଣ୍ଡ ଯେ । ଭାଟକା ହୋଇ ଅଇ ନ ପାରେ କାଢ଼ି ଯେ । ଅନାଇ ଥିଲା କୁରୁରାଜନ

Digitized by PPRACHIN, SOA

ଦେଖିବ ବୋଲି ସଖୀବଦନ ଯହିଁକି ଗୃହେଁ ତହିଁ ବସନ ଅଛଇ ଜଡ଼ି
ଯେ ।୪। ସଭାରେ ଥିଲେ ଗଙ୍ଗାନନ୍ଦନ ବୋଇଲେ ଶୁଣ କୁରୁରାଜନ
କେତେହେଁ ସ୍ତ୍ରୀଜନମାନ କରୁଛ ନାରୀରତନ ଯେ । ଯାହାକୁ ସାହା
ଶ୍ରୀ ଭଗବାନ ତୁ କି ତାହାର ଅଙ୍ଗୁ ଭଞ୍ଜନ ଅନଳନେତ୍ରେ ଗୃହିଁଲେ ତୁହି
ହେବୁ ଦହନ ଯେ । ଆମ୍ଭ ବଚନ କର କୁରୁରାଜନ ଯେ । ନ କାଢ଼
ଅଛ ସଖୀଅଙ୍ଗୁ ବସନ ଯେ । ଯାଜ୍ଞସେନୀ ଯେ ତୋହର ପାଟରାଣୀ ସେ
କେତେ ପିନ୍ଧିଛି ପାଟ ଏ ଅଟେ ଗୋବିନ୍ଦଙ୍କ କପଟ ବୁଝ ରାଜନ ହେ ॥
ଭୀଷ୍ମବଚନ ଶୁଣି ରାଜନ ଡାକିଲା ଅରେ ରେ ଦୁଃଶାସନ ନ କାଢ଼
କୃଷ୍ଣାଅଙ୍ଗୁ ବସନ ଘେନ ବଚନ ଯେ । ଦ୍ରୌପଦୀ ଦେଖି କୁପିତମନ
ବୁଲାଇ ଯେବେ ଅଗ୍ନିନୟନ ଗୃହିଁବେ ସବୁ ହେବ ଦହନ ଅସ୍ଥାନଜନ
ହେ । ଲକ୍ଷଣ କର ଦେଖି ସଭା ବଦନ ଯେ । ଭାବନ୍ତି ବସିଛନ୍ତି ମୋ
ଗୁରୁଜନ ଯେ । ପୁଣି ଚିନ୍ତନ୍ତି ସର୍ବେ ପୁରୁଷ ଏହାଙ୍କୁ ଯେବେ କରିବା
ନାଶ ଏଥିରେ ନ ଲଭିବ ମୁଁ ଯଶ ବୁଝି ଏସନ ଯେ । ୬ । ଏରୂପେ
ମନେ ମନେ ବିଗ୍ରହ ପ୍ରଳୟ ଅଗ୍ନି ନେତ୍ରେ ବସ୍ତ୍ରାର ଗୃହାନ୍ତେ ଦୁର୍ଯୋ
ଧନ ନବରେ ପଡ଼ିଲା ଯାଇ ଯେ । ପବନଘାତ ପାଇ ହୁତାଶ ଯୋଡ଼ିଲେ
ନଗ୍ରପୁର ଉଆସ ଦେଖିବଚନେ ସେ ସ୍ୱର୍ଣ୍ଣହଂସପୁର ଦହଇ ଯେ ।
ସମସ୍ତ ନାରୀମାନେ ସଭୟ ହୋଇ ଯେ । ବ୍ୟସ୍ତେ ବସନ ତେଜି ଗଲେ
ପଳାଇ ଯେ । ଭାନୁମତୀର ଅଙ୍ଗରେ ଅଗ୍ନି ବେଢ଼ନ୍ତେ ବସ୍ତ୍ର ପକାଇ
ଫେଡ଼ି ପ୍ରାଣଭୟରେ ସଭା ମଧ୍ୟରେ ମିଳିଲେ ଯାଇ ହେ ।୭। ସଭାରେ
ଥିଲେ ବନ୍ଧୁରାଜନ ହସିଲେ ମୁଖେ ଦେଇ ବସନ ଦ୍ରୋଣ ବୋଲନ୍ତି
କୁରୁରାଜନ ବଚନ ଶୁଣ ହେ । ପରକୁ ଯେଣୁ ଚିନ୍ତଇ ମନ୍ଦ ତାହାକୁ
ମନ୍ଦ ଚିନ୍ତେ ଗୋବିନ୍ଦ ଅନ୍ତକାଳରେ ସେହି ଲଭଇ ଅତି କଷଣ ହେ ॥
ତୁ ନୃପନାଥ ମନେ କଲୁ ଗରବ ହେ । ଗର୍ବଗଞ୍ଜନବାନା ପ୍ରଭୁକେଶବ
ହେ । ସଭାରତଳେ ଦ୍ରୌପଦୀ ଥିଣି ବିବସ୍ତ୍ର କଲୁ ନୃପମଣି ତୋହର
କୁଳବଧୂ ହେଲେ ନଗ୍ନ ଦେଖିଲେ ସର୍ବ ହେ ।୮। ଏମନ୍ତେ ଦ୍ରୋଣଗୁରୁଙ୍କ

Digitized by PPRACHIN, SOA

ବାଣୀ ଶୁଣିଣ ଯେହ୍ନ ନୃପତିମଣି ଚୋ'କ ମୁଖରେ ଲବଣ ଜାଣି ହେଲା ମଉନ ଯେ । କୁରବମାନେ ବନ୍ଧନ ଯାଉ ଧୃତରାଷ୍ଟ୍ରର ଅଗେ ଜଣାଇ ଭେ ଦେବ ଭୂମ୍ନ ଦୈତ୍ୟଶ୍ଚନ୍ଦ୍ର ମହୁମା ଶୁଣ ହେ । ଯୁଧିଷ୍ଠି ଦେବ ସଙ୍ଗେ ପାଶାରେ ମାତ ହେ । ରାଜ୍ୟଧନ ଭଣ୍ଡାର ସମସ୍ତ ଜିତ ହେ । ସଭାର ତଳେ ଦ୍ରୌପଦୀ ଅଣି ବିବସ୍ତ୍ର କଲା ନୃପତିମଣି ଅନଳନେତ୍ରେ ବୃହାନ୍ତେ ଷଣ୍ଢ ପୁତ୍ର ଦଗ୍ଧନ୍ତ ହେ ।୯। ଶୁଣି ବୋଲଇ ଅନ୍ଧ ରାଜନ ମୋହର ବଂଶ ହେଲେ ନିଧନ କୁଳବଧୂଙ୍କ ସଙ୍ଗରେ ଯେଣ ଯାଏ ନରେଶ ଯେ । ହସ୍ତରେ ଯେଣ ସୁବର୍ଣ୍ଣସ୍ଥାଳୀ ସ୍ବେଚ୍ଛା ହୋଇ ଚଳଲେ ବାଳୀ ଜମ୍ବୁଶବଦ ଦେଉଣ ହେଲେ ଦ୍ରୌପଦୀ ପାଶ ହେ । ବନ୍ଦାଘନା କରଲେ ମାନ୍ୟ ବିଶେଷ ହେ । ଧନସ୍ତ ବଚନରେ ଅନ୍ଧ ନରେଶ ଯେ । ସାନ୍ତ୍ୱନା କରି ପୁତ୍ରକୁ ଦେଲେ ବହୁପଲଙ୍କେ ଅସନ ଦେଲେ ବିବଧ ଉପହାରେ ତାହାଙ୍କୁ କଲେ ସନ୍ତୋଷ ଯେ ।୧୦। ସେଠାରୁ ଦେବୀ ଗୌରବ ପାଇ । ରତନ ପଲଙ୍କରୁ ଓହ୍ଲାଇ ଅନନ୍ତମନେ ନିଜପଦନେ ଚିହ୍ନସୁକଲେ ଯେ । ଅଗ ପଛରେ ରଜନ୍ତ ଦାସୀ ପ୍ରବେଶ ହେଲେ ବାରୁଣୀ ଅସି ଉତରପ୍ରର ରହୁପଲଙ୍କେ ଯାଇ ବସିଲେ ଯେ । ଏ ଯେ କପଟପାଶା ଅମୃତରସଯେ । ସୁଜନଜନେ ଏହ୍ନ ରସରେ ରସ ହେ । ନୃହେଁ ମନ୍ଦ ଜାତ କୈବର୍ତ୍ତ ଶୁଦ୍ଧ ଅଶୁଦ୍ଧ ନ ଜାଣ ଚତ୍ର କହଇ ଶ୍ରୀମ ପ୍ରଭୁଚରଣେ ସର୍ବଦା ଅଶ ହେ । ୧୧ ।

ସମାପ୍ତ ।

କଟକ ଅରୁଣୋଦୟ ପ୍ରେସରେ ଶ୍ରୀ ନିତ୍ୟାନନ୍ଦ ସାହୁଙ୍କ ଦ୍ୱାରା ମୁଦ୍ରିତ

Digitized by PPRACHIN, SOA

# ବିଜ୍ଞାପନ ।

ନିମ୍ନଲିଖିତ ମାହାତ୍ମ୍ୟ ଓ ଅନ୍ୟାନ୍ୟ ସମସ୍ତ ପ୍ରକାର ପୁସ୍ତକମାନ କଟକ ଅରୁଣୋଦୟ ପ୍ରେସର ପୁସ୍ତକାଳୟରେ ସଞ୍ଚିତ ଅଛି ଗ୍ରାହକଗଣ ତଲ୍ଲବକଲେ ଅନାୟାସେ ପ୍ରାପ୍ତ ହେବେ ।

| | |
|---|---|
| ଏକାଦଶୀ ମାହାତ୍ମ୍ୟ | ଖ ୧ ଟ ୦ ୳ |
| କାର୍ତ୍ତିକ ମାହାତ୍ମ୍ୟ | ଖ ୧ ଟ ୦ ୳ |
| ମାଘ ମାହାତ୍ମ୍ୟ | ଖ ୧ ଟ ୦ ୳ |
| ବୈଶାଖ ମାହାତ୍ମ୍ୟ | ଖ ୧ ଟ ୦ ।୶ |
| ଗଙ୍ଗା ମାହାତ୍ମ୍ୟ | ଖ ୧ ଟ ୦ । |
| ମାର୍ଗଶିର ମାହାତ୍ମ୍ୟ | ଖ ୧ ଟ ୦ । |
| ପୌଷ ମାହାତ୍ମ୍ୟ | ଖ ୧ ଟ ୦ । |
| ନିର୍ଗୁଣ ମାହାତ୍ମ୍ୟ | ଖ ୧ ଟ ୦ ।/ |
| ଗୀତା ମାହାତ୍ମ୍ୟ | ଖ ୧ ଟ ୦ /୭ |
| ଭାଗବତ ମାହାତ୍ମ୍ୟ | ଖ ୧ ଟ ୦ ।୶ |
| ଉତ୍କଳତୀର୍ଥ ମାହାତ୍ମ୍ୟ | ଖ ୧ ଟ ୦ ୷ |
| ତୁଳସୀ ପୂଜା ମାହାତ୍ମ୍ୟ | ଖ ୧ ଟ ୦ / |
| ସତ୍ୟନାରାୟଣ ବ୍ରତ | ଖ ୧ ଟ ୦ / |
| ବିନାୟକ ବ୍ରତ | ଖ ୧ ଟ ୦ /୩ |
| କୁଳୁଟି ବ୍ରତ | ଖ ୧ ଟ ୦ / |
| ସାବିତ୍ରି ବ୍ରତ | ଖ ୧ ଟ ୦ / |
| କେଦାର ବ୍ରତ | ଖ ୧ ଟ ୦ / |
| ମଙ୍ଗଳ ସଙ୍କ୍ରାନ୍ତି ବ୍ରତ | ଖ ୧ ଟ ୦ / |
| ସୋମନାଥ ବ୍ରତ | ଖ ୧ ଟ ୦ ୶ |
| ସୁଦଶା ବ୍ରତ | ଖ ୧ ଟ ୦ /୭ |
| ଦୂର୍ଗାଷ୍ଟମୀ ବ୍ରତ | ଖ ୧ ଟ ୦ / |
| ରାଧାଷ୍ଟମୀ ବ୍ରତ | ଖ ୧ ଟ ୦ / |
| ଜନ୍ମାଷ୍ଟମୀ ବ୍ରତ | ଖ ୧ ଟ ୦ ୶୭ |
| ନାଗଚତୁର୍ଥୀ ବ୍ରତ | ଖ ୧ ଟ ୦ ୶ |

ଅରୁଣୋଦୟ ପ୍ରେସ
ବାଲୁବଜାର କଟକ } ପ୍ରିଣ୍ଟର
ଶ୍ରୀ ନିତ୍ୟାନନ୍ଦ ସାହୁ ।

Digitized by PPRACHIN, SOA